ISSN: 2456-9194, Vol. I, Issue. I, 2017

ପ୍ରତ୍ୟୟ

(Journal of Odia Language, Culture and Science)

# ତୃପ୍ତି ଅତୃପ୍ତିର ଉତ୍ତୀର୍ଣ୍ଣତା-ଉନ୍ମୁଖତା ବନାମ ସପ୍ତମଋତୁ

ସଦାନନ୍ଦ ଦତ୍ତ

ଗବେଷକ, ସ୍ନାତକୋତ୍ତର ଓଡ଼ିଆ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର

sadananda.uu@gmail.com

**ସଂକ୍ଷିପ୍ତ ପରିଚୟ**-*'ସପ୍ତମଋତୁ' କବିତାଟି କବି ରମାକାନ୍ତ ରଥଙ୍କ ସ୍ୱତନ୍ତ୍ର ପର୍ଯ୍ୟାଲୋଚନାର ଅପେକ୍ଷା ରଖେ । ଏଥିରେ କବି ତୃପ୍ତି-ଅତୃପ୍ତି ମଧ୍ୟରେ ନୂତନ ଜୀବନ ଜିଇଁବାର ଅଭିପ୍ରେରଣା ଯୋଗାଇଛନ୍ତି । ମୃତ୍ୟୁର ସୁଖ ଭିତରେ ପୁଣି ବଞ୍ଚିବାର ଅନୁସନ୍ଧିତ୍ସା ମଣିଷର ଆବେଗରେ ପ୍ରତିମୁହୂର୍ତ୍ତରେ ଉଙ୍କିମାରୁଛି। 'ସପ୍ତମଋତୁ' ର ପ୍ରଚ୍ଛଦ ପରିକଳ୍ପନାରୁ ମନେ ହୁଏ, ମଣିଷର ଜୀବନ ବ୍ୟାପି ଅସହାୟତା ସତ୍ତ୍ୱେ, ତା' ଆତ୍ମାର ସଜସୁନ୍ଦର ଫୁଲଟି ରହିଛି ତଥାପି ସ୍ୱଚ୍ଛ ଓ ଅମଳିନ । ମହାକାଳ ସମୟ (ହୁଏତ ସପ୍ତମଋତୁର ଜଗତ) କୁ ହେପାଜତରେ ସାଇତି ରଖିବ ନିଶ୍ଚୟ ।*

***ପ୍ରମୁଖ-ଶବ୍ଦାବଳୀ*** *(Keywords) - ସପ୍ତମଋତୁ, ମହାକାଳ, ରମାକାନ୍ତ ରଥ, ଆତ୍ମସମର୍ପଣ*

ସପ୍ତଦଶକର ପ୍ରାରମ୍ଭରେ ଯେଉଁ କେତେଜଣ କବି ନିଜର ପ୍ରେମ, ମୃତ୍ୟୁ ଏବଂ ବିଷାଦବୋଧକୁ ନେଇ ସମଗ୍ର ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିପାରିଥିଲେ, ସେମାନଙ୍କ ମଧ୍ୟରେ କବି ରମାକାନ୍ତ ରଥ ସୁପରିଚିତ । ଇଂରାଜୀରେ ଏମ୍.ଏ. ପାସ୍ ପରେ ଭାରତୀୟ ପ୍ରଶାସନିକ ସେବାରେ ନିଜର କର୍ତ୍ତବ୍ୟ ସୂଚାରୁରୂପେ କରିଥିଲେ ହେଁ ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଅଦମ୍ୟ ଇଚ୍ଛାଶକ୍ତି କେବେ ମଳିନ ପଡ଼ିନଥିଲା । ସେ ନିଜର କର୍ମମୟ ଜୀବନ ମଧ୍ୟରେ ୧୯୩୪ ମସିହାରେ କଟକରେ ଜନ୍ମଠାରୁ ପ୍ରଶାସନିକ ପଦବୀ ପର୍ଯ୍ୟନ୍ତ ନିଜର କର୍ତ୍ତବ୍ୟ ପରିଚାଳନା କରିଥିଲେ । ଏତଦ୍‌ବ୍ୟତୀତ ମିଳିତ ଜାତିସଂଘର ଖାଦ୍ୟ ଓ କୃଷି ସଂସ୍ଥା ଦ୍ୱାରା ଏକବର୍ଷ ପାଇଁ ଦକ୍ଷିଣ ଆମେରିକାର ଗାଏନାରେ ଭୂସଂସ୍କାର ପରାମର୍ଶଦାତା ରୂପେ ଅବସ୍ଥାପିତ ଥିଲେ । ନୂଆଦିଲ୍ଲୀରେ ଅବସ୍ଥାନ ପରେ ପରେ ଓଡ଼ିଶା ସରକାରଙ୍କର ମୁଖ୍ୟ ଶାସନ ସଚିବ ଭାବେ ଅବସର ଗ୍ରହଣ କରିଥିଲେ ।

ଓଡ଼ିଆ ସାହିତ୍ୟର ଅଗ୍ରଗତି ଦିଗରେ କବି ରମାକାନ୍ତ ରଥ ନିଜର ସୁଚିନ୍ତିତ ସୃଜନଶୀଳ ଲେଖା ପାଇଁ ପାଠକଙ୍କର ପ୍ରିୟ ହୋଇପାରିଛନ୍ତି । ତାଙ୍କର ବିଭିନ୍ନ କୃତି ଯଥା: 'କେତେ ଦିନର' (୧୯୬୧), 'ଅନେକ କୋଠରୀ' (୧୯୬୭), 'ସନ୍ଦିଗ୍ଧ ମୃଗୟା' (୧୯୭୨), 'ସପ୍ତମଋତୁ' (୧୯୭୭), 'ସଚିତ୍ର ଅନ୍ଧାର' (୧୯୮୨), 'ଶ୍ରୀରାଧା' (୧୯୮୫), 'ଶ୍ରୀପଳାତକ' (୧୯୯୬), 'ସୀମାନ୍ତ ବାସ' (୨୦୦୨) ଆଦି ଅନ୍ୟତମ । ଏତଦ୍‌ବ୍ୟତୀତ ତାଙ୍କର ନିର୍ବାଚିତ କବିତା ଓ କ୍ଷୁଦ୍ରଗଳ୍ପ ଗଳ୍ପ ସଂକଳନଗୁଡ଼ିକ ଯଥାକ୍ରମେ 'ଶ୍ରେଷ୍ଠ କବିତା' (୧୯୯୨), 'ଷାଠିଏ' (୨୦୦୨) ଇତ୍ୟାଦି ଓ ଅନ୍ୟାନ୍ୟ ଗଳ୍ପ, ଭାରତୀୟ ଗୋଷ୍ଠୀର ପ୍ରତିନିଧି ଭାବେ ଋଷିଆ, ଚୀନ୍, ଫ୍ରାନ୍ସ, ଇଂଲଣ୍ଡ, ସ୍ୱିଡ଼େନ୍‌ରେ କବିତା ପାଠ ୨୦୦୧ରେ ଏକମାତ୍ର ଭାରତୀୟ ଲେଖକ ଭାବେ ତାଇୱାନକୁ ନିମନ୍ତ୍ରିତ। ସେ ମଧ୍ୟ କେନ୍ଦ୍ରସାହିତ୍ୟ ଏକାଡ଼େମୀ ପୁରସ୍କାର (୧୯୭୮), ଶାରଳା ପୁରସ୍କାର (୧୯୮୪), ବିଷୁବ ସମ୍ମାନ (୧୯୯୦), ଜାତୀୟ କବିତା ପୁରସ୍କାର (୨୦୦୨) ଇତ୍ୟାଦି ସମ୍ମାନରେ ସମ୍ମାନିତ ହୋଇଥିଲେ ।

ଆଲୋଚ୍ୟ 'ସପ୍ତମରତୁ' କବିତା ମାଧ୍ୟମରେ କବି ରମାକାନ୍ତ ରଥଙ୍କୁ ସ୍ୱତନ୍ତ୍ରରୂପେ ପର୍ଯ୍ୟାଲୋଚନା କରାଯାଇପାରେ । କବିତାଟିରେ କବି ତୃପ୍ତି-ଅତୃପ୍ତି ମଧ୍ୟରେ ନୂତନ ଜୀବନ ଜିଇଁବାର ଅଭିପ୍ରେରଣା ଯୋଗାଇଛନ୍ତି । ସେହି ମୃତ୍ୟୁର ସୁଖ ଭିତରେ ପୁଣି ବଞ୍ଚିବାର ଅନୁସନ୍ଧିତ୍ସା, ମଣିଷର ଆବେଗରେ ପ୍ରତିମୁହୂର୍ତ୍ତରେ ଉଙ୍କିମାରୁଛି । ମୃତ୍ୟୁଚେତନା ମଧ୍ୟରେ ହିଁ ନୂତନ ଜୀବନ ବଞ୍ଚିବାର ଉଚ୍ଚୁ ଖତା ସୃଷ୍ଟି କରୁଛି । ପ୍ରକୃତିର ଛଅଟି ଋତୁ ବ୍ୟତୀତ କବିଏଠାରେ ସପ୍ତମରତୁକୁ ଆବାହନ କରିଛନ୍ତି । ଜୀବନର ତାଡ଼ନା ମଧ୍ୟରେ ମୃତ୍ୟୁ ଅବଶ୍ୟମ୍ଭାବୀ। ମଣିଷ ଜନ୍ମ ହୋଇଛି ମାନେ ଦିନେ ନା ଦିନେ ନିଶ୍ଚୟ ମୃତ୍ୟୁବରଣ କରିବ । ତଥାପି ସପ୍ତମରତୁ ମଧ୍ୟରେ ଏକ ନୂତନ ଜୀବନ ସୃଷ୍ଟି କରିବାର ପରିକଳ୍ପନା ଏକ ପ୍ରଶ୍ନବାଚୀ?

ଉଭୟ ଭାବବସ୍ତୁ ଓ ରଚନାଶୈଳୀ ଦୃଷ୍ଟିରୁ ରମାକାନ୍ତଙ୍କ କବିତା ପୂର୍ବବର୍ତ୍ତୀ କବିମାନଙ୍କଠାରୁ ଭିନ୍ନ । ଅତି ସାଧାରଣ ଶବ୍ଦ ତାଙ୍କ ପ୍ରତିଭାର ଦିବ୍ୟସ୍ପର୍ଶରେ ଗଭୀର ଅର୍ଥଦ୍ୟୋତିକ ବ୍ୟଞ୍ଜନା ନେଇ ଉଭା ହୁଏ । ସାଧାରଣରେ ଅସାଧାରଣ, ଲୌକିକରେ ଅଲୌକିକ, ଅନ୍ତରର ଗଭୀର ହୃଦୟାବେଗ ସହିତ ମନନଶୀଳତା, ତୀକ୍ଷ୍ଣ ଜୀବନବୋଧ ଓ ସୁରଭିର ଭାବବୈଚିତ୍ର୍ୟ ତାଙ୍କ କବିତାକୁ କରିଛି ରହସ୍ୟମୟ ଏବଂ ଆଧାତ୍ମିକ । ରମାକାନ୍ତଙ୍କ କବିତା ଆତ୍ମଦର୍ଶନ ଓ ଆତ୍ମବିଶ୍ଳେଷଣର କବିତା । ସେ ନିଜକୁ ନାନା କଥା ପଚାରନ୍ତି । ସେ କବି ବୋଦେଲେୟାରଙ୍କ ପରି କୌଣସି ଆଦର୍ଶ ରାଷ୍ଟ୍ର କି ସମାଜ ଗଠନର ସ୍ଥପତି ନୁହନ୍ତି କିମ୍ବା ସମାଜ ଓ ଶାସନ ବିରୋଧରେ ପ୍ରତିବାଦ କରିବା ତାଙ୍କର ଧର୍ମ ନୁହେଁ । କବି ହେଉଛି ଫୁଲ ବାବୁଟିଏ; ଯିଏ ଆରିସି ଆଗରେ ଦିନ ବିତାଏ ଓ ରାତ୍ରିଯାପନ କରେ । ସମାଜରେ ଥାଇ ସୁଧା ସେ ସମାଜ ବ୍ୟବସ୍ଥା ସଂପର୍କରେ ଶିଥିଳ । ସମାଜରେ ରହି ବି ସେ ନିଃସଙ୍ଗ । ତେଣୁ ସେ ନିଜର ସୀମା ସଂପର୍କରେ ସଚେତନ । ସେଥିପାଇଁ ସେ କୁହନ୍ତି –

"ନଥିରେ ଲେଖିଚି କେତେ ନିର୍ଦ୍ଦେଶ ଯାହାର
ଶକ୍ତି ନାହିଁକୌଣସି କଥାକୁ ।
ବଦଳାଇ ଦେବା ଲାଗି, ଯାହା ବଦଳୁଛି
ଅବରୋଧ କରିବାକୁ ତାକୁ ।" (ଯେଝାବାଟ)

ଜୀବନ ଓ ଜଗତ ସଂପର୍କରେ ସେ ଅନେକ କଥା ଉପଲବ୍ଧି କରିପାରୁଥିଲେ ସୁଧା ଏସବୁର ସମ୍ମୁଖୀନ ହେବାପାଇଁ ତାଙ୍କଠାରେ ଶକ୍ତି ନାହିଁ। ତାଙ୍କ କବିତା ନିଜ ସହ ଏକ ଅନ୍ତରଙ୍ଗ ଆଳାପ, ତାହା ସ୍ୱଗତୋକ୍ତି। ତାଙ୍କ କବିତାର ସ୍ୱର ଅନୁଚ୍ଚ । ସେ ଗୁଣୁଗୁଣୁ ହୋଇ ନିଜ ସହ ନିଜେ କଥା ହୁଅନ୍ତି । ତାଙ୍କ କବିତା ହେଉଛି ତାଙ୍କ କବି ବ୍ୟକ୍ତିତ୍ୱର ଅବିଚ୍ଛେଦ୍ୟ ଅଙ୍ଗ । ତାଙ୍କ କବିତା ସଂପର୍କରେ ତାଙ୍କରି ଭାଷାରେ କହିଲେ,

"All that I want to say is that those poet whose inner vision rest on the wider truth of their ideational experience often consider it unethical to speak loudly; so we should not tail to hear their words to spoken in the almost inaudible voice."(Saraswati Samman - 1992, Ramakanta Rath, 11th March 1993, New Delhi)

ଜୀବନ, ପ୍ରେମ ଓ ମୃତ୍ୟୁ ଭାବନା 'ସପ୍ତମରତୁ'ର କବିତା ମାନଙ୍କୁ ଆଦ୍ୟପ୍ରାନ୍ତ ଆଚ୍ଛନ୍ନ କରିଛି । କାବ୍ୟନାୟକ ନିଜ ଜୀବନର ଭଉଁରୀ ଭିତରେ ଛଟପଟ ହେଉହେଉ ଅନେକ ସମୟ ସେଇ 'ତମେ'ଙ୍କ ପାଖରେ ନିଜର ଦଇନୀ, ଦୁଃଖ, ଆନନ୍ଦ ଓ ଅବସାଦ ପ୍ରକାଶ କରିଛି । ପୁନଶ୍ଚ ମୃତ୍ୟୁର ଅଜ୍ଞାତ ଇଲାକା ପ୍ରତି ତାଙ୍କର ଏ ସଂକଳନରୁ ବହୁ କବିତାରେ ଏକ ଆଧିଭୌତିକ ଆକୃତି ଓ କୌତୁହଳ ପ୍ରକାଶ ପାଇଛି। କବିତା ଗ୍ରନ୍ଥ ପ୍ରଚ୍ଛଦରେ ସେଇ ଭାବନା ସୂଚିତ ହୁଏ । ଦିନମାସ ବର୍ଷର ନାମାବଳୀ ପିନ୍ଧି ସମୁଦ୍ର ବେଳାରେ ଉଭାନ ହୋଇ ମରିପଡ଼ିଥିବା ମଣିଷଟିର ଆତ୍ମାରୂପକ ଫୁଲ ଚାଙ୍ଗୁଡ଼ିକୁ ଏକ ଶକ୍ତିଶାଳୀ କ୍ରେନ ଅନ୍ତରୀକ୍ଷକୁ ଉଠାଇ ନେଉଛି । ସେ କ୍ରେନଟିର ମୂଳ ବା ଅବସ୍ଥିତି ଜଣାଯାଉ ନାହିଁ । ତାହା ହୋଇପାରେ ସେଇ ଅନାଦି ଅନନ୍ତଭୂମାର ପ୍ରତୀକ । ସେ ବି ହୋଇପାରେ ମହାକାଳ, ଯାହାର ଶକ୍ତି ସମ୍ବନ୍ଧରେ ମଣିଷ ଅଥଳ ସମୁଦ୍ରରେ ରୋସମାନ କଳାବିନ୍ଦୁଟିଏ ମାତ୍ର । ବିସ୍ତୃତ ମୃତ୍ୟୁ ପାଖରେ ମଣିଷ ଜୀବନର କେତେ ବର୍ଷର ସ୍ଥିତି କେତେ ତୁଚ୍ଛ ଓ ସୀମିତ ତାହାହିଁ ପ୍ରତ୍ୟକ୍ଷୀଭୂତ ହୋଇଛି ମୃତ୍ୟୁ ବ୍ୟକ୍ତିର ନାମାବଳୀରୁ । ତେଣୁ ମୃତ୍ୟୁ ପରବର୍ତ୍ତୀ ସମୟକୁ ଯେ ଏ କବିତା ଗ୍ରନ୍ଥରେ ସପ୍ତମରତୁ ଭାବେ ପରିକଳ୍ପନା କରାଯାଇଛି – ଏହା ନିଃସନ୍ଦେହ । ଅତଏବ କବି ରହସ୍ୟମୟ ଭାଷାରେ ପୁନର୍ମିଳନ ଭାବାବେଗକୁ ପରିକଳ୍ପନା କରିଛନ୍ତି । 'ଆମର ବିମର୍ଷ ଭାଗ୍ୟ' କବିତାର ଶେଷ କେତୋଟି ପଂକ୍ତିକୁ ଲକ୍ଷ୍ୟ କଲେ ଜଣାଯାଏ –

"ମୁଁ ତାକୁ ମାଗିବି କ'ଣ?ଅବିଶ୍ରାନ୍ତ ଖଟିବାର ଫଳ? ସେ ତ ମତେ ମିଳିଅଛି – ବାତଗ୍ରସ୍ତ ପ୍ରତିଗଣ୍ଠି, ମୁଣ୍ଡଯାକ ଝୋଟପରି ବାଳ । ଅସୁଖୀ ଘରଣୀ ଏବଂ ପିଲାମାନେ ଅସ୍ଥିର ଦେବୀଙ୍କ ସୀତାରରେ ଗୋଟେ ଗୋଟେ ତାର କିପରି ମାଗିବି ଅବା ମୁଁ ହେଲିଣି ଅଂଶ ତା ସ୍ୱପ୍ନର ଯେଉଁଥିରେ ମୋ ଶରୀର / ନଈପରି ଅଗ୍ରସର ହୁଏ। ସମୁଦ୍ର ଆଡ଼କୁ ତା' ନିର୍ମମ ଆଶ୍ଳେଷକୁ କିଏ ମୃତ୍ୟୁ କହେ ଓ ପୁନର୍ମିଳନ । କହେ ଅନ୍ୟ କିଏ ।"

ପାରିବାରିକ ଜୀବନର ବିଷାଦ, ରୋଗଗ୍ରସ୍ତତା ହେତୁ ମନର ବୈରାଗ୍ୟ ଓ ଜୀବନ ପ୍ରତି ବିତୃଷ୍ଣ ବ୍ୟକ୍ତିଟିଏ ହିଁକେବଳ ଚିନ୍ତା କରିପାରେ । ତା' ସହିତ ମିଶି ରହେ ବ୍ୟକ୍ତିଗତ ପ୍ରେମର ବିଫଳତା, ଦେହଜ କାମନାର ଅଚରିତାର୍ଥତା, ଭାଗ୍ୟର ବିପର୍ଯ୍ୟୟ ପ୍ରତି ସଚେତନତା, ହତାଶା ଓ ବିଚ୍ଛିନ୍ନତାବୋଧ ଅର୍ଥାତ - ଯେଉଁ ଯେଉଁ ଉପାଦାନଗୁଡ଼ିକ ଜୀବନକୁ ଘେରି ରହିଛନ୍ତି ସେସବୁର ଅତିରିକ୍ତ ଉତ୍ପୀଡ଼ନ । 'ସପ୍ତମରତୁ'ର କାବ୍ୟ ନାୟକ ଏପରି ଏକ ବିଫଳ ପ୍ରେମିକ, ବିତୃଷ୍ଣ ଗୃହସ୍ଥ, ବିରକ୍ତ କର୍ମଚାରୀ, ବିଷାଦଗ୍ରସ୍ତ ପିତା, ବିମର୍ଷ ସ୍ୱାମୀ ରୂପେ ଏ ସଂକଳନର ବହୁ କବିତାରେ ସ୍ୱଗତୋକ୍ତି ପ୍ରକାଶ କରନ୍ତି । ଏତେ ବିଫଳତାକୁ ସାମ୍ନା କରୁଥିବା ମଣିଷଟିଏ ପୃଥିବୀର ଛ'ଟି ଋତୁକୁ ଉପେକ୍ଷା କରି ଆଉ ଏକ

ଇଲାକାକୁ ଚାଲିଯିବାକୁ ମନରେ ପିପାସା ପୋଷଣ କରିବା ବିଚିତ୍ର ନୁହେଁ । ତେଣୁ 'ସପ୍ତମଋତୁ'ର ମୁଖବନ୍ଧରେ ମହାପାତ୍ର ନୀଳମଣି ସାହୁ ଯଥାର୍ଥରେ କହିଛନ୍ତି ଯେ, "ସେ ଗୋଟିଏ ହାତରେ ପ୍ରେମ ଅନ୍ୟ ହାତରେ ଓ (ଜୀବନ) ଉଭୟକୁ ଧରି ଛଟପଟ ହେଉଥାଏ (ଶୂନ୍ୟତା) ମୃତ୍ୟୁ। ଗୋଟିଏ ହାତମୁଠାକୁ ବୁଜିରଖି ମନେମନେ ଖୁସି ହେଉଥାଏ ଯେ ସେ ପ୍ରେମକୁ ମୁଠେଇ ଧରିଛି । ସେ ଉଲ୍ଲାସରେ ଅନ୍ୟ ହାତ ମୁଠାଟି ଖୋଲିବା ମାତ୍ରେ ସେ ଆତଙ୍କିତ ହୋଇଉଠେ ଯେ ତା' ଭିତରେ କେବଳ ଅପ୍ରେମ ଓ ମୃତ୍ୟୁ ହିଁ ରହିଛି । ଏଣୁ ସଚେତନ ବ୍ୟକ୍ତି ପକ୍ଷରେ ବିଷାଦ ହିଁ ଏକମାତ୍ର ଧ୍ରୁବ ଅଭିଜ୍ଞତା ।"

ପ୍ରେମପତ୍ର ଲେଖିବା ଏକ ଅସମ୍ଭବ ବ୍ୟାପାର ବୋଲି 'ସପ୍ତମଋତୁ'ରେ କବି ଉପଲବ୍ଧି କରିଛନ୍ତି । କାରଣ ଦେହାବସାନ ସମୟ ପାଖେଇ ଆସିବାର ଅନୁଭବ ତାଙ୍କୁ ବାରମ୍ବାର ବ୍ୟଥିତ କରୁଛି ।

"ମତେ ଲାଗେ ମୋ ଦେହାନ୍ତ ଆରମ୍ଭ ହେଲାଣି ଝରଣାର କୁଳୁକୁଳୁ ବୋହିବା ଶବ୍ଦରେ ସମ୍ଭାବନା ନିମନ୍ତ୍ରଣ କିଛି ନାହିଁ ଖାଲି ଗୋଟିଏ ଦେହର ଧ୍ୱଂସ ପରବର୍ତ୍ତୀ ବିଳାପ ଶୁଭେ ଓ ମୋ ପ୍ରେମପତ୍ରର ଭାଷା ଶୁଭେ ମଧ୍ୟ ଅସ୍ପଷ୍ଟ ସ୍ୱରରେ ।" (ପ୍ରେମପତ୍ର)

ତେଣୁ ପ୍ରେମପତ୍ର ଲେଖିବାର ଆଶା ଆଶରେ ହିଁ ରହିଯାଏ । କବି ଭାବେ ଝରକାବାଟେ ସମୁଦ୍ରର ଶୀତଳ ପବନ ଆସୁଥାନ୍ତା ଓ ସେଇ ଅବସ୍ଥାରେ ସେ ଜୀବନର ଶ୍ରେଷ୍ଠ ପ୍ରେମପତ୍ର ଲେଖି ବସନ୍ତେ । ସେ ଚିଠିରେ ଥାନ୍ତା ସୁବାସିତ ସ୍ୱପ୍ନ ଓ ନାୟିକା ସେ ଚିଠି ପଢ଼ି ମୃତ୍ୟୁର ହିମଶୀଳତ ଦୁର୍ଗ ଭାଙ୍ଗିଦେବାର କୁହୁକ ବିଦ୍ୟା ହାସଲ କରିପାରନ୍ତା। ନାୟକ ନିଃଶ୍ୱାସରେ ଭରି ରହିଥାନ୍ତା ସବୁ ଋତୁର କ୍ରମିକ ପ୍ରବାହ । ଏପରିକି ଶୀତଋତୁରେ ମଧ୍ୟ ସେ ନିଜର ଆତ୍ମସମର୍ପଣ ମଧ୍ୟରେ ମଲ୍ଲୀଫୁଲର (ଯାହା ପ୍ରକୃତରେ ବୈଶାଖରେ ଫୁଟିବା କଥା) ସରାଗ ଓ ସୁଗନ୍ଧ ବିଛେଇ ଦେଇପାରନ୍ତା। ବେଶ୍ ରୋମାଣ୍ଟିକ୍ ପରିକଳ୍ପନା ଯାହା ବାସ୍ତବତାର ବିଦ୍ରୂପରେ ହୁଏ କକ୍ଷଚ୍ୟୁତ । କାରଣ ପରେ ପରେ ନାୟକର ଚେତନାକୁ ମୃତ୍ୟୁ ଭାବନା ହିଁ ଜଡ଼ସଡ଼ କରିଦିଏ ।

କାବ୍ୟନାୟକ ବାରମ୍ବାର ଜୀବନରେ ପ୍ରେମର ବିଫଳତାକୁ ଭେଟିଛି; ଏପରିକି ପିଲାଦିନେ ସାଙ୍ଗ ହୋଇ ଯେଉଁ ଝିଅଟି ସହିତ ଖେଳୁଥିଲେ ସେ ଝିଅଟି ବିଚ୍ଛିନ୍ନ ହୋଇଯାଇଛି । ସେଇ ଛୋଟ ପିଲାଟି ପାଇଁ ସେ ଅନେକଥର କିଶୋର ଅବସ୍ଥାରେ ଝୁରି ହୋଇଛନ୍ତି ଓ କାନ୍ଦିଛନ୍ତି ମଧ୍ୟ। କିନ୍ତୁ, ଅନେକଥର ପରେ ସେ ଝିଅଟିକୁ ସେ ସ୍ୱପ୍ନରେ ଯେତେବେଳେ କୌଣସି ଦୋକାନରେ ଭେଟନ୍ତି ସେତେବେଳେ ସେ କାହା ଘରର ଘରଣୀ, ତା' ବେକରେ ବହଳ ଚର୍ବି, ହାତରେ ନାନାଦି ସଉଦାର ବ୍ୟାଗଟିଏ । କାବ୍ୟନାୟକ ଘରକୁ ଫେରି ସେଇ ଛୋଟ ଝିଅଟିକୁ ମନେ ପକାଇ କାନ୍ଦନ୍ତି; କିନ୍ତୁ ଛୋଟ ଝିଅଟି ପରିବର୍ତ୍ତେ ନାରୀଟିଏ ତାଙ୍କ ସ୍ୱପ୍ନ ଭିତରକୁ ବାରମ୍ବାର ପଶିଆସେ ଓ ବିଭୋର ଚିନ୍ତାକୁ ଭାଙ୍ଗିଦିଏ । କାବ୍ୟନାୟକ ସ୍ମୃତିରୁ ସେଇ ଛୋଟ ପିଲାଟିର ହଳଦୀ ଲଗା ଦେହର ବାସ୍ନା କିନ୍ତୁ ଯାଏନାହିଁ । ରୋଗଶଯ୍ୟାରୁ ବିବାହ ବେଦୀ ପର୍ଯ୍ୟନ୍ତ ସେଇ ବାସ୍ନାର ମହକ ଲାଗିରହେ । (ବିଚ୍ଛେଦର ଦୁଇଟି ମଧ୍ୟାନ୍ତର)

ପୁଣି ଆଉ ଏକ ବିଚ୍ଛେଦର କାହାଣୀ କାବ୍ୟନାୟକକୁ ଆକ୍ରାନ୍ତ କରେ । ପ୍ରେମିକକୁ ତା'ର ପାଉଣା ଦେବାପାଇଁ ବରାବର ଆସୁଥିଲା ପ୍ରେମିକା; କିନ୍ତୁ କେଉଁ ଅପଦେବତାର ଅଭିଶାପରୁ ସେମାନଙ୍କର ବିଚ୍ଛେଦ ଘଟେ । କୋମଳ ଖରାରେ, ସୁନେଲି ଅପରାହ୍ନରେ, ପବନର ଶୀତଳ ସ୍ପର୍ଶରେ ଏବେ ସେ ଆସେ; ନାୟକ କିନ୍ତୁ ତାକୁ ଛୁଇଁପାରେ ନାହିଁ କିମ୍ବା ଦେଖିପାରେନାହିଁ । କେଉଁ ଅଭିଶାପରୁ ନାୟକ ରୁଗ୍ଣ ହୋଇଯାଏ ଓ ନାୟିକାର ଅପାଶୋରା ସୌନ୍ଦର୍ଯ୍ୟ ବି କ୍ରମେ ମଳିନ ହୋଇଆସେ । ସେମାନଙ୍କର ଯଦିଓ ଆଉ ଭେଟାଭେଟି ହୁଏନାହିଁ, ତଥାପି ମନରେ ପ୍ରେମଥାଏ ଅତୁଟ । ପ୍ରେମକୁ କବି ମାତୃଭୂମି ଓ ଈଶ୍ୱରଙ୍କ ମର୍ଯ୍ୟାଦା ଦେବାକୁ ପଛାନ୍ତିନାହିଁ । (ବିଚ୍ଛେଦର ଦୁଇଟି ମଧ୍ୟାନ୍ତର)

ନାୟିକା ଚାଲିଯିବା ପରେ ନାୟକ ପାଇଁ ସମୟ ଦୁର୍ବିସହ ହୋଇଉଠେ । ରାତିଅଧରେ ବିମାନ ବନ୍ଦରରେ ନୀଳବତୀଗୁଡ଼ିକ ଯେପରି କ୍ରମେ ଅନ୍ଧକାର ଭିତରକୁ ଲମ୍ୱିଯାଏ ଏବଂ ଆଲୋକର କ୍ଷୀଣରେଖା ଶେଷ ହେବାପରେ ଯେପରି ଅପ୍ରମିତ ଅନ୍ଧକାର ବିମାନ ବନ୍ଦରକୁ ଘୋଟିରହେ, ଠିକ୍ ସେହିପରି କାବ୍ୟନାୟକର ମନର ଅବସ୍ଥା । ତା'ପାଇଁ ଘୋଟି ରହିଛି ଘନ ଅନ୍ଧକାର । ପ୍ରେମିକା ବ୍ୟତିରେକ ନାୟକର ଆଶା ଓ ଗନ୍ତବ୍ୟ ସବୁ ଯେପରି ଅନ୍ଧକାରଛନ୍ନ ହୋଇଉଠେ। ଆଖିବୁଜିଲେ ମୁଣ୍ଡରେ ଯନ୍ତ୍ରଣା ଅନୁଭବ କରେ, ସତେଯେପରି ଓହ୍ଲାଇଲାବେଳେ ବ୍ୟୋମଯାନ ଭାଙ୍ଗି ଚୂନା ହୋଇଯାଉଛି । କୋଠରୀରୁ ସବୁରଙ୍ଗ ଛାଡ଼ିଯାଉଛି, ଗାଲିଚା ଓ ଶେଯ ବର୍ଷାରେ ଓଦା ହୋଇଯାଉଛି – ଏହିପରି ଅନୁଭବ ନାୟକକୁ ଖୁବ୍ ବେଶୀ ଛଟପଟ କରେ । ନିଜ ଘରେ ନିଜେ ସତେଯେପରି ସେ ଜଣେ ଆଗନ୍ତୁକ ଅତିଥି । ହସିବାକୁ ଯେତେ ଚେଷ୍ଟା କଲେ ବି ହସ ମାଡ଼େ ନାହିଁ । ସ୍ମୃତିକୁ ଜୀବନ୍ୟାସ ଦେବାକୁ ଚେଷ୍ଟା କରି ନିଜ ଭାଗ୍ୟକୁ ହିଁ ସେ ଦୋଷ ଦିଏ । ଆଲୋକ (ଖରା) ତା' ପାଇଁ ଅସହ୍ୟ ହୋଇଉଠେ । ତେଣୁ ଆଖିବୁଜି ନିଦ ଯିବାକୁ ଚେଷ୍ଟା କରେ । ନାୟିକା ଚାଲିଯିବା ପରେ ନାୟକ ସ୍ୱାଭାବିକ ଅଭୟାଧୀନ ହୁଏ । ଯାହାସବୁ ଘଟିଗଲା ତାହା ଥିଲା ନାୟକର ଅସଂଯତ ମନର ତାଡ଼ନା - ଯାହା ବହୁ ଅବାସ୍ତବ କଥାର ପରିକଳ୍ପନା କରିଆସିଥିଲା, ନାୟିକାର ଲୁହ ଓ କୋହ ପ୍ରତି ନାୟକ ସେତେବେଳେ ଧ୍ୟାନ ଦେବାକୁ କୁଣ୍ଠିତ ଥିଲା ବୋଧହୁଏ । କିନ୍ତୁ, ସମୟକ୍ରମେ ନାୟକ ସେହି ନାୟିକାର ନାନାଦି ସୌନ୍ଦର୍ଯ୍ୟ ପରିକଳ୍ପନା କରିବସୁଛି । ଯଦିଓ ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ସେସବୁ କଳ୍ପନା ଅସ୍ତିତ୍ୱ ହରାଇବସେ । ସମୟ ଏଡ଼େ ଶକ୍ତିଶାଳୀ ଯେ ମଣିଷ ମନର ଦୁଃଖ ଓ ଶୋକ ପାଇଁ ଆଦୌ ଅପେକ୍ଷା କରେନାହିଁ । ଜୀବନ, ମୃତ୍ୟୁ ଓ ପ୍ରାୟଶ୍ଚିତବୋଧ, ସବୁ ସେଇ ସମୟଠାରେ ଗୋଳେଇ ଫେଣ୍ଟି ହୋଇଯାଏ । ସେ ସମୟ ବ୍ୟକ୍ତି ମଣିଷ ପାଇଁ ଯେତେବେଳେ ଶେଷ ହୋଇଯାଏ, ତା'ପରେ ରହେ କେବଳ ଅମାପ ଅନ୍ଧାର । ମୃତ୍ୟୁ, ଶୋକ ଓ ସମାପ୍ତିର ଅନ୍ଧକାର କଥା ସୂଚେଇଦିଏ । ସବୁ ଲାଗେ ପ୍ରାଣହୀନ ଓ ଅସାର । (ତମେ ଚାଲିଯିବା ପରେ)

'ସପ୍ତମରତୁ'ର ପ୍ରଚ୍ଛଦ ପରିକଳ୍ପନାରୁ ମନେ ହୁଏ, ମଣିଷର ଜୀବନ ବ୍ୟାପି ଅସହାୟତା ସେଥିରେ ତା ଆତ୍ମାର ସଜସୁନ୍ଦର ଫୁଲଟି ରହିଛି ତଥାପି ସ୍ୱଚ୍ଛ ଓ ଅମଳିନ ଯେହେତୁ ତାହା ଦେବାର ନୈବେଦ୍ୟ ପାଇଁ ଅଭିପ୍ରେତ । ମହାକାଳ ସମୟ (ହୁଏତ ସପ୍ତମରତୁର ଜଗତ) ହେପାଜତରେ ସାଇତି ରଖିବ । ପ୍ରେମପରି ମୃତ୍ୟୁ ଚେତନା 'ସପ୍ତମରତୁ'ର ଅନ୍ୟତମ ବିଶିଷ୍ଟ ବିଭାବ ଏଥିରେ ମତଦ୍ୱୈଧ ଥାଇନପାରେ । କେତେବେଳେ ବଳିଷ୍ଠ କେନ୍ଦ୍ରୀୟ ଚେତନା ଭାବେ ତ କେତେବେଳେ ସ୍ୱର୍ଶକ ଭାବେ ଏହି ଚେତନା 'ସପ୍ତମରତୁ'ର କାବ୍ୟବୃତ୍ତକୁ ଛୁଇଁ ରହିଛି । ସେପରି କବିତାର ସଂଖ୍ୟା ମଧ୍ୟ ଏହି ସଂକଳନର କିଛି କମ୍ ନୁହେଁ । 'ଯାଅନାହିଁ', 'ଆମର ବିମର୍ଷ ଭାଗ୍ୟ', 'ଜନନୀର ସ୍ନେହ', 'ନର୍ତ୍ତକୀ', 'ଶିଷ୍ଟାଚାର', 'ଉଜ୍ଜଳ ଭବିଷ୍ୟତ', 'ଦୂରଦୃଷ୍ଟି', 'ଶାଗୁଣା', 'ମରିବାକୁ ଯାଉଥିବା ଲୋକ', 'ବୁଢ଼ି ମରିବା', 'ଧୀବର', 'ଯେଝାବାଟ' ଏ ସମସ୍ତ କବିତା ଊଣାଅଧିକେ ମୃତ୍ୟୁଚେତନାକୁ ବହନ କରନ୍ତି । ତାଙ୍କ ଚେତନାରେ ପୁଣି ମୃତ୍ୟୁ ଦୁଇ ପ୍ରକାରର; ଗୋଟିଏ ଜୀବନ ମୃତ୍ୟୁ ଓ ଅନ୍ୟଟି ଦେହାନ୍ତ । ଦେହାନ୍ତ ତାଙ୍କ ଚେତନାର ଶ୍ଳାଘ୍ୟ କାରଣ ତାହା ଜୀବନରେ ବାରମ୍ବାର ମରୁଥିବା ବ୍ୟକ୍ତିଟିକୁ ବରଂ ସମସ୍ତ କ୍ଳେଶ ଓ ଯନ୍ତ୍ରଣାରୁ ମୁକ୍ତି ଦିଏ ।

**ସହାୟକ ଗ୍ରନ୍ଥସୂଚୀ**


୧. ରଥ ରମାକାନ୍ତ : ଉତ୍ତର ସତୁରୀ କାବ୍ୟଚେତନା, ନିତ୍ୟାନନ୍ଦ ଶତପଥୀ, ପୃ.୧୯୭
୨. ଦାସ ଦାଶରଥି : ମୃତ୍ୟୁଲୋକରେ ଋତୁସପ୍ତମ, ଅଗ୍ରଦୂତ, ପୃ.୬୧
୩. ରଥ ରମାକାନ୍ତ : ସପ୍ତମରତୁ, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ
୪. କର ବାଉରୀବନ୍ଧୁ: ସାହିତ୍ୟ ସାଧକ କବି ରମାକାନ୍ତ, ଫ୍ରେଣ୍ଡସ୍ ପବ୍ଲିଶର୍ସ, କଟକ